# ଗୀତିନାଟ୍ୟ

# ସଶାପଗ୍ରସ୍ତ

ଗୋପାଳଛୋଟରାୟ



ଗୀତିନାଟ୍ୟ

# ବାଣୀ ପରାଜୟ

ନାଟ୍ୟକାର
ସ୍ୱର୍ଗତ **ବାଳକୃଷ୍ଣ ମହାନ୍ତି**
ବେତାର ନାଟ୍ୟ ରୂପାନ୍ତର
**ଗୋପାଳ ଛୋଟରାୟ**

ଗ୍ରନ୍ଥ ମନ୍ଦିର

ପ୍ରକାଶକ :
ଅଭିରାମ ମହାପାତ୍ର
**ଗ୍ରନ୍ଥମନ୍ଦିର**
କଟକ-୨ : ବ୍ରହ୍ମପୁର-୧

ମୁଦ୍ରକ :
**ଇନ୍ଦ୍ରାଣୀ ପ୍ରିଣ୍ଟିଂ ପ୍ରେସ**
କଟକ-୯

ପ୍ରଥମ ମୁଦ୍ରଣ :
ଏପ୍ରିଲ୍, ୧୯୭୭

ମୂଲ୍ୟ ଟ ୧.୨୫

**ସୂଚନା :** ଏହି ଗୀତିନାଟ୍ୟରେ ଦୃଶ୍ୟ ବା ଅଙ୍କର ଅବତାରଣା କରାଯାଇନି । ବିଭିନ୍ନ ସ୍ୱରର ଯନ୍ତ୍ରବାଦ୍ୟ ଓ ତାଳ ବାଦ୍ୟ ଆଦିର ପ୍ରୟୋଗ ଦ୍ୱାରା ନାଟକର ଗତିରେ କ୍ରମ ବିଭାଗ (Sequence) କରାହୋଇଛି । ଏହା ବେତାର ପାଇଁ ଉଦ୍ଦିଷ୍ଟ ହେଲେହେଁ ଉକ୍ତ ପଦ୍ଧତିର ଅନୁସରଣରେ ଏହାକୁ ମଞ୍ଚରେ ସୁନ୍ଦରରୂପେ ଅଭିନୟ କରାଯାଇପାରେ ।

[ ବହୁ ବିଭିନ୍ନ ଯନ୍ତ୍ରବାଦ୍ୟ ଓ ତାଳବାଦ୍ୟର ସମନ୍ୱୟରେ ଉତ୍ପନ୍ନ ଉଚ୍ଛଳ ସ୍ୱର ଲହରୀ—ଯାହାକୁ ଏକ ପୌରାଣିକ ନାଟକର ଆବାହନୀ କୁହାଯାଇପାରେ ।]

ଶିବ—ଦୁର୍ବୃତ୍ତ ବାଣାସୁର ! ତୋର ଏତେ ଆସ୍ପର୍ଦ୍ଧା, ଏତେ ଦର୍ପ !! ତୁ ମୋର ବରରେ ବଳୀୟାନ ହୋଇ ଅହଙ୍କାରରେ ଜ୍ଞାନଶୂନ୍ୟ ହୋଇଛୁ । ଦର୍ପାନ୍ଧ ମୂଢ଼ ! ତୁ ବିଶ୍ୱସଂହାରକ ମହାକାଳ ଶିବ ସହିତ ସଂଗ୍ରାମ ଇଚ୍ଛା କରିଛୁ ! ମୂର୍ଖ, ମୁଁ ନିଶ୍ଚୟ ତୋର ଗର୍ବ ଚୂର୍ଣ୍ଣ କରିବି । ନିଶ୍ଚୟ ତୋର ବଳବୀର୍ଯ୍ୟ ହରଣ କରିବି । ଦେଖିବା, କିଏ···କିଏ ତୋତେ ରକ୍ଷା କରିବ !

ପାର୍ବତୀ—ନାଥ, ନାଥ, ଏକି ଭୟଙ୍କର ମୂର୍ତ୍ତି ? କାହାଠାରେ ଏତେ ରୋଷ ?

ଶିବ—କ'ଣ କହିବ ପ୍ରିୟେ ! ସେ ପାପମତ୍ତ ବାଣାସୁର ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତ୍ରିଭୁବନ ଜୟକରି—ତହିଁରେ ତୃପ୍ତ ନହୋଇ—ଗୋଲକବିହାରୀ ଶ୍ରୀକୃଷ୍ଣଙ୍କ ସହିତ ସମର କରିବା ପାଇଁ ଦୃଢ଼ ଅଭିଳାଷ କରିଛି । ମୂର୍ଖ ବୁଝି ପାରୁ ନାହିଁ, ତାର ଅନ୍ତିମ ସମୟ ନିକଟ ହୋଇଗଲାଣି । ଆଜି ତା' ସହିତ ମୋର କୌଣସି ସମ୍ପର୍କ ନାହିଁ ।

ପାର୍ବତୀ—ଏଥର ତାକୁ କ୍ଷମା ଦିଅନ୍ତୁ ନାଥ ! ସେ ଆମ ସନ୍ତାନ ପରି । ଗଣେଶ କାର୍ତ୍ତିକ ଯେପରି ଆମ ସ୍ନେହର ପାତ୍ର, ବାଣ ମଧ୍ୟ ସେଇପରି ।

ଶିବ—ସ୍ୱୀକାର କରୁଛି ବାଣ ଆମର ସନ୍ତାନ ପରି । ସେଥିପାଇଁ ତା'ର ଜୀବନ ନନେଇପାରେ; କିନ୍ତୁ ତାର ଗର୍ବ ଖର୍ବ କରିବି ।

ପାର୍ବତୀ—ନାଥ, ଆପଣ ତ ନିଜେ ତାର ଦର୍ପ ବଢ଼ାଇଛନ୍ତି । ପୁଣି ନିଜେ ତାହା ଅପହରଣ କରିବେ ? ଏହା କ'ଣ ଉଚିତ ହେବ ?

ଶିବ—ତୁମ ଅନ୍ତର କଥା ମୁଁ ବୁଝୁଛି ପାର୍ବତୀ ! ସେଥିପାଇଁ ଏଥର ତାକୁ କ୍ଷମା ଦେଲି; କିନ୍ତୁ ଏହା ପରେ ଯଦି ସେ କୌଣସି ଅପକର୍ମ କରେ···ଏଇତ ବାଣ ଏ ଆଡ଼କୁ ଆସୁଛି !

ବାଣ—ଆହା ! ପ୍ରଭୁ ମୋର କୈଳାସ କନ୍ଦରେ ମା' ଭଗବତୀଙ୍କ ସହିତ ବିରାଜମାନ ହୋଇଛନ୍ତି । ଜୟ ଶିବ ଶମ୍ଭୁ, ଜୟ ମା' ଭଗବତୀ !

( ଗୀତ )

ଗଙ୍ଗାଧର ହର ମମ ଦୁର୍ଗତି ହର ଶିବ ଶିବ ଶଙ୍କର
ବଂ ବଂ ଭୋଳା, ଡିବିଡିବି ଡମ୍ବରୁ ଡିବଡିବି ଡମ୍ବରୁ
ଡିବିହବି ଡମ୍ବରୁ ବାଜେ ତୋ ପାଶ ।

ପାର୍ବତୀ—ବତ୍ସ ! ତ୍ରିଲୋକବିଜୟୀ ହୁଅ !

ବାଣା—ମା କୃପାମୟୀ ! ଏ ଆଶୀର୍ବାଦ କର ମୋତେ ଆଜ ଲଜ୍ଜା ଦିଅନ୍ତୁ ନାହିଁ । ବରଂ କାମନା କରନ୍ତୁ, ମୁଁ ଯେପରି କାହାଦ୍ୱାରା ପରାଜିତ ହୁଏ ।

ପାର୍ବତୀ—କାହିଁକରେ ବାପ, ତୁ ଏ କଥା କହୁଚୁ କାହିଁକି ?

ଶିବ—ତୁ ତ ଜାଣୁ ବତ୍ସ, ତୋ ସମାନସ୍କନ୍ଧ ଯୋଦ୍ଧା ଏ ତ୍ରିଭୁବନରେ କେହି ନାହିଁ !

ବାଣା—ତା'ହେଲେ ମୁଁ ତ୍ରିଭୁବନବିଜୟୀ ହେଲି କପରି ? ଶକ୍ତିର ପରୀକ୍ଷା ଯଦି ହୋଇ ନ ପାରିଲା, ତେବେ ଏ ଶକ୍ତି ଧାରଣର ମୂଲ୍ୟ କ'ଣ ?

ଶିବ—ତେବେ କ'ଣ ତୋର ଇଚ୍ଛା ?

ବାଣା—ମୋ' ତୁଲ୍ୟ ବୀର ଯଦି କେହି ନାହିଁ ତେବେ ଆପଣ ନିଜେ ଏ ଦାସ ସହିତ ସମରରେ ଅବତୀର୍ଣ୍ଣ ହୁଅନ୍ତୁ ।

ଶିବ—ପ୍ରିୟତମେ, ଶୁଣିଲତ ବାଣାର ବଚନ ? ଏଇ ମୋର ବର ପ୍ରଦାନର ଫଳ ।

ପାର୍ବତୀ—ବତ୍ସ ବାଣାସୁର ! ଏ କି ଅନ୍ୟାୟ କଥା ତୁ କହୁଚୁ ?

ବାଣା—କିଛି ଅନ୍ୟାୟ ନୁହେଁ ମା ! ପିତାଙ୍କୁ ଯୁଦ୍ଧରେ ପରାଜିତ କଲେ ମୋର ଆଉ କାହାରିକୁ ଭୟ ନଥିବ । ନଚେତ ମୋତେ ସ୍ପଷ୍ଟ କୁହନ୍ତୁ ମୋ ସମାନସ୍କନ୍ଧ ଯୋଦ୍ଧା କିଏ ?

ଶିବ—ତେବେ ଶୁଣ ବତ୍ସ ! ଅଚିରେ ତୋର ମନକାମନା ପୂର୍ଣ୍ଣ ହେବ । ଗୋଲକବିହାରୀ ଶ୍ରୀକୃଷ୍ଣଙ୍କ ସହିତ ତୁ ଯୁଦ୍ଧରେ ଅବତୀର୍ଣ୍ଣ ହେବୁ ।

ବାଣା—ଜୟ ମା ଭବାନୀ, ଜୟ ପ୍ରଭୁ କୈଳାସପତି ।
ଅଧୀନ ଏବେ ମେଲାଣି ଘେନୁଚି ।

(ଚିକଏ ପରେ)

ଶିବ—ପ୍ରିୟେ, ତୁମେ ଏବେ ମାୟା-କାମିନୀମାନଙ୍କୁ ଆଦେଶ ଦିଅ, ସେମାନେ ଶ୍ରୀକୃଷ୍ଣଙ୍କ ନାତି, ପ୍ରଦ୍ୟୁମ୍ନର ପୁତ୍ର ଅନିରୁଦ୍ଧ ସହିତ ବାଣାସୁରର କନ୍ୟା ଉଷାର ଗୋପନ ମିଳନ କରାନ୍ତୁ ।

ପାର୍ବତୀ—ଗୋପନ ମିଳନ ?

ଶିବ—ଅନିରୁଦ୍ଧ ନିଦ୍ରିତ ଥିବାବେଳେ ସେମାନେ ତାଙ୍କୁ ଉଷାର ଶୟନ କକ୍ଷକୁ ଆଣିବେ । ପୁଣି ସେଇପରି ଉଷା ନିଦ୍ରା ଯାଇଥିବାବେଳେ ଅନିରୁଦ୍ଧଙ୍କୁ ଅପହରଣ କରିନେବେ । ଏଇ ଘଟଣାରୁ ହିଁ ବାଣା ସହିତ ଶ୍ରୀକୃଷ୍ଣଙ୍କର ଯୁଦ୍ଧ ହେବ ।

ପାର୍ବତୀ—ଯଥା ଆଜ୍ଞା ସ୍ୱାମୀ !

[ପ୍ରଣୟ ସୂଚକ ଶିବ୍ର ଯନ୍ତ୍ର ସଙ୍ଗୀତ]

ଚନ୍ଦ୍ରଲେଖା—ହଇଗୋ ଜେମାଦେଈ, ତମେ ଦିନକୁ ଦିନ ଏମିତି ଶୁଖିଲାଠା କାହିଁକି ଦେଖାଯାଉଚ ? ତମର ପୁଣି କି ଚନ୍ତା ?

ସରଳା—କି କଥା ତୁ କହୁଚୁଲୋ ଚନ୍ଦ୍ରଲେଖା, ଚନ୍ତା ପୁଣି କାହାର ନାହିଁ ? ପିତାର ପୁତ୍ର ଚନ୍ତା, ସ୍ତ୍ରୀର ସ୍ୱାମୀ ଚନ୍ତା ।

ଚନ୍ଦ୍ର—ତେବେ ତୁ କହିଲୁ ସରଳା, ଆମ ଜେମାଦେଈଙ୍କୁ କାହା ଚନ୍ତା ଘାରିଚି ?

ସରଳା—ଜେମାଦେଈ ନିଜେ କୁହନ୍ତୁ କି ଚନ୍ତା । ତାଙ୍କ ମନକଥା ଖୋଲି କହିଲେ ଆମେ କ'ଣ କିଛି ପ୍ରତିକାର କରିନ୍ତୁ ନାହିଁ ?

ଉଷା—ସଖି, କ'ଣ ମୁଁ କହିବି ? କହିବାକୁ ମୋର ଭାଷା ନାହିଁ ।

( ଗୀତ )

ମରମର କଥା ମରମେ ମରୁଚି
କହିବି ମୁଁ କାହାରେ (ଘୋଷା)

ମନ୍ଦ ଅନଳ ବହୁଲଣି
(ପିକ) ବସନ୍ତ ଆଗମ କହୁଲଣି,
ମଲ୍ଲୀ ଜାଇ ଯୁଇ କେତକୀକୁ ଗୁହିଁ
ଉଡ଼େ ମୋର ସାହାରେ ।୧।
ଏ ପୋଡ଼ା ପରାଣେ ନାହିଁ ମୋ ଆଶା
ଘୋଟିଲଣି ଆସି ଘୋର ଦୁରଦଶା,
ଧିକ୍ ଜନ୍ମ ଯୋଗ୍ୟ ନାହିଁ ଯେବେ ଆଶା
ଉଡ଼େ ମୋର ସାହାରେ ।୨।

ଉଷା—ସଖି, ପିତାଙ୍କ ଦାରୁଣ ପ୍ରତିଜ୍ଞା କଥା ଶୁଣିଚ ତ ? ମୁଁ ଆଉ ଅଧିକ କ'ଣ କହିବ ?

ଚିତ୍ର—ସତ ଏକା ! ଆମ ମହାରାଜା ବାଣାସୁର ଅଟଳ ପ୍ରତିଜ୍ଞା କରିଚନ୍ତି—ତାଙ୍କୁ ଯିଏ ଯୁଦ୍ଧରେ ପରାଜିତ କରିବ ଆମ ରାଜଜେମା ଉଷାଙ୍କୁ ସେହି ବାହା ହବ । ସତରେ ଆମ ମହାରାଜାଙ୍କୁ କିଏ ଯୁଦ୍ଧରେ ପରାସ୍ତ କରିବ ନା ଜେମା ଆମର ବାହା ହେବେ ?

ସରଳା—ଇନ୍ଦ୍ର ପରି ବୀରଙ୍କ ଯେଉଁଠି ହାରିଗଲେ, ଆଉ ପୁଣି କିଏ ମହାରାଜାଙ୍କୁ ପରାସ୍ତ କରିବ ?

ଉଷା—ସଖି ଚିତ୍ରଲେଖା, ସରଳା ! ମୋପରି ହତଭାଗିନୀ ଆଉ କେହି ନାହିଁ । ମୋ ପାଇଁ ଯୁଦ୍ଧ ଲାଗିବ, କେତେ ପ୍ରାଣହାନି ଘଟିବ—ହେଲେ ମୋ ଆଶା ମେଣ୍ଟିବ ନାହିଁ ।

( ଗୀତ )

ପ୍ରାଣ ସଙ୍ଗୀ, ମହୀରେ କି ସୁଖ ମୋର ଆଉ
ଦୁଃଖ ନିଶୀ ଘୋଟି ଆସିଲଣି ଗୁହୁଁ ଗୁହୁଁ
କି କରିବ ଗୋ,
କେମନ୍ତେ ଏ ପ୍ରାଣ ମୁଁ ଧରିବ ଗୋ ।୧।

ତରୁ ବିନା ଲତା କାହିଁ ଆଶ୍ରୟ ପାଇବ
ଭୂମିରେ ଲୋଟି ସାଉଁଟି ସିନା ସେ ମରିବ,
ପ୍ରିୟ ଆଳି ଗୋ,
ଦୁଃଖୋନଳେ ପଡ଼ି ମରେ ଜ୍ୱାଳି ଗୋ ।୨।

ଊଷା—ଏ ଅଲୋଡ଼ା ଜୀବନରେ ମୋର ଆଉ କିଛି ପ୍ରୟୋଜନ ନାହିଁ ସଖି ! ମୁଁ ନିଶ୍ଚୟ ବିଷ ଜହର ଖାଇ ଜୀବନ ତ୍ୟାଗ କରିବି ।

ଚିତ୍ର—ଆହା ଜେମାମଣି ! ଏ ଅଲକ୍ଷଣା କଥା ଆଉ ତୁଣ୍ଡରେ ଧର ନାହିଁ । ଇଷ୍ଟଦେବ ନିଶ୍ଚୟ ତୁମ ଦୁଃଖ ହରଣ କରିବେ ।

ଊଷା—କୁମାରୀଧର୍ମ ପାଳନ ପରେ ପତିବ୍ରତା ଧର୍ମ ପାଳନ କରିବା ହିଁଉଚି ନାରୀର ଧର୍ମ । ଇଷ୍ଟଦେବଙ୍କୁ ସ୍ମରଣ କରି ମୋ ମନ କଥା ଖୋଲି ତମକୁ କହିଲି । ତମେମାନେ ଅନ୍ୟ କିଛି ଭାବିବ ନାହିଁ ।

ସରଳା—ଏ କଥା ଆମକୁ ପୁଣି ତମେ କହୁଚ ଜେମା ?

ଊଷା—ରାତି ଅଧିକ ହେଲାଣି ସଖି ! ପଲଙ୍କ ସଜାଇ ଦିଅ । ମୁଁ ଶୋଇବି ।

ଚିତ୍ର—ଟିକିଏ ଆଉଁସିଦେବି କି ଜେମା ?

ଊଷା—ନାଇଁ ନାଇଁ, ମୁଁ ଶୋଉଚି, ତମେମାନେ ଯାଅ ।

[ ସ୍ୱପ୍ନସୂଚକ ଯନ୍ତ୍ର ସଙ୍ଗୀତ ]

ଅନିରୁଦ୍ଧ—(ନିଦରୁ ଉଠି) କି ଆଶ୍ଚର୍ଯ୍ୟ ସ୍ୱପ୍ନ ! କିଏ ଏକ ଅକଳଙ୍କ ସୁଧାଂଶୁବଦନା ଯୁବତୀ ତା'ର ସୁ-କୋମଳ ବାହୁ-ବନ୍ଧନରେ ମତେ ଆବଦ୍ଧ କରି ପୁଣି ମୋ ନିକଟରୁ ଅପସାରିତ ହୋଇଗଲା ! ଏଁ ! ଏ କେଉଁ ସ୍ଥାନ ? ଇଏତ ମୋର ଶୟନକକ୍ଷ ନୁହେଁ !

ପୁଣି ଏ ପଲଙ୍କରେ ମୁଁ ଏଠି ଶୋଇଚି ? ଏ ଅନନ୍ୟସୁନ୍ଦରୀ ତରୁଣୀଟି କିଏ ? ମୁଁ ତ ଠିକ୍ ଏହାକୁ ହିଁ ସ୍ୱପ୍ନରେ ଦେଖିଥିଲି । ନା...ମୁଁ...ମୁଁ ତ ନିଦ୍ରିତ ନୁହେଁ—ପୂର୍ଣ୍ଣ ଜାଗ୍ରତ ! କିଏ ଏଇ ତରୁଣୀ !

( ଗୀତ )

କାହା ମନୋହାରୀ ଏ ମୋ ମନ ମୋହିଲରେ
ଦେବୀ କି ମାନବୀ କଳନା ମୋର ନୋହିଲରେ
ତିଳ ପୁଷ୍ପ ଜିଣି ନାଶା
ମୃଗାକ୍ଷୀ ଅପୂର୍ବ ଯୋଷା
ଗୋପନେ ଆସି ମୋ ପାଶେ ମୋ ହୃଦକୁ ଦହିଲରେ ।୧।
କରକବଦନୀ ଧନୀ
ଗଣ୍ଡ କୋକନଦ ଜିଣି
ଧନ୍ୟ ସେ ବିଧାଣି କେତେ ଯତନେ ଯାଁକୁ ଗଢ଼ିଲରେ ।୨।

ଅନିରୁଦ୍ଧ—ସଖି ! ତୋର ଏ ଅପୂର୍ବ ରୂପ ଲାବଣ୍ୟ ମୋ ହୃଦୟକୁ କିଣି ନେଲଣି । ମତେ ତୁ ଆଉ ଅନ୍ତର କରିବୁ ନାହିଁ । ହୃଦୟେଶ୍ୱରୀ ! ତୁହି ମୋର ଜୀବନ, ତୁହି ମୋର ଜ୍ଞାନ, ତୁହି ମୋର ସକଳ ସମ୍ପଦ । ଉଠ ସଖି ! ନା, ନିଦ୍ରାଭଙ୍ଗ କରିବି ନାହିଁ । ମୋ ସ୍ନେହର ନିଦର୍ଶନ ସ୍ୱରୂପ ଏହି ମୁଦ୍ରିକାଟି ତୋ ଅଙ୍ଗୁଳିରେ ପିନ୍ଧାଇ ଦେଇ ତୋ ନିଦ୍ରାଭଙ୍ଗ ପର୍ଯ୍ୟନ୍ତ ଏଇଠି ଅପେକ୍ଷା କରି ରହିଲି ।

[ ବେହେଲରେ ଏକ ସୁମଧୁର ସ୍ୱର ଝଙ୍କାର ]

ଊଷା—ଆହା, କେତେ ସମୟ ମୁଁ ଶୋଇପଡ଼ିଲି ! ପ୍ରଭାତ ହବାକୁ ଆଉ ଡେରି ନାହିଁ ବୋଧହୁଏ । ଏଁ ? ଏ ଅପରିଚିତ ଯୁବକଟି କିଏ ? ମୋ କକ୍ଷରେ ଏ ପ୍ରବେଶ କଲେ କିପରି ? ଗୃହର ଦ୍ୱାରତ ରୁଦ୍ଧ ହୋଇଛି—ଆସିଲେ କିପରି ? ତେବେ କ'ଣ

କେହ୍ନ ଦେବକୁମାର ? କିନ୍ତୁ—କିନ୍ତୁ କି ଲଜ୍ଜାର କଥା ! ମୁଁ ଅବିବାହିତା ଯୁବତୀ ହୋଇ ଜଣେ ଅପରିଚିତ ଯୁବକ ସଙ୍ଗରେ ଏକ ପଲଙ୍କରେ ନିଦ୍ରା ଯାଇଛି । ଯଦି ସଖିମାନେ ଆସି ପହଞ୍ଚିଯା'ନ୍ତି ! ନା, ସେମାନେ ଆସିବା ପୂର୍ବରୁ ମୋର ଏ କକ୍ଷ ତ୍ୟାଗ କରି ଚାଲିଯିବା ଦରକାର । ମାତ୍ର ଏ କ'ଣ—ମୋ ପାଦ ଦୁଇଟି ଯେମିତି ଆପେ ଆପେ ଟାଣି ହୋଇ ରହିଯାଉଛି । ଏ କକ୍ଷ ଛାଡ଼ି ମୁଁ ଯାଇପାରୁ ନାହିଁ । ଆହା, ଏ କି ଦେବଦୁର୍ଲ୍ଲଭ ରୂପ, କି ତେଜ ! ହେ ପ୍ରଭୁ ଇଷ୍ଟଦେବ ! ମା ଭଗବତୀ ! ମୋ ଅନ୍ତର ବେଦନା ଜାଣି ତୁମେ ନିଶ୍ଚେ ୟାଙ୍କୁ ଆଣି ମତେ ଦେଇଛ । ୟାଙ୍କୁ ଛାଡ଼ି ମୁଁ ଯାଇ ପାରିବି ନାହିଁ । ହେ ନବୀନ ଯୁବକ, ଦଶଦିଗପାଳଙ୍କୁ ସାକ୍ଷୀରଖି ମୋର ମନପ୍ରାଣ ମୁଁ ତୁମଠାରେ ଅର୍ପଣ କଲି । ଉଠ ନାଥ !

( ଗୀତ )

ଉଠ ପ୍ରାଣଧନ ମୋ ଜୀବ ଜୀବନ
ଉଠ ଦୁଃଖିନୀର କଣ୍ଠମଣି
ତବ ଶ୍ରୀଚରଣେ ଆଜଟି ଗୋପନେ
ସମର୍ପିଲି ପ୍ରାଣ ଅଭାଗିନୀ
ଆଶ୍ରା ଦିଅ ବାରେ,
ତବ ବିନା କେହ୍ନ ନାହିଁ ଅଧୀନୀରେ ।୧।
କେତେ ଦିଅଁ ପୂଜି ପାଇଛି ମୁଁ ଆଜ
ତବ ପଦ-ଯୁଗ ହେ ଜୀବେଶ
ଥରେ ସ୍ନେହ ଦାନ କଲେ ଜୀବଧନ
ଯିବ ଦୁଃଖିନୀର ହୃଦୁ ତ୍ରାସ
ଦୟାକର ଥରେ
ଅଭାଗିନୀ ପଡ଼ି ମରେ ଦୁଃଖାନଳେ ।୨

ଉଷା—ନାଥ ! ଉଠିବ ନାହିଁ ? ତୁମେ ଦାସୀର ଅନୁରୋଧ ରକ୍ଷା କରିବ ନାହିଁ ? ଉଠ ନାଥ ! ନା, ତୁମ ନିଦ୍ରା ଭଙ୍ଗ କରିବି ନାହିଁ । ତୁମେ ନିଦ୍ରା ତେଜି ଉଠିବା ପର୍ଯ୍ୟନ୍ତ ଏଇଠି ତୁମ ପାଦତଳେ ମୁଁ ନିଦ୍ରାଗଲି ।

[ ବଂଶୀର କ୍ଷିପ୍ର ଝଙ୍କାର ]

ଉଷା—ଏଁ ! ଏ କ'ଣ ହେଲା ? ମୋ ହୃଦୟେଶ୍ୱରଙ୍କୁ କିଏ କୁଆଡ଼େ ନେଇଗଲା ? ଦିଅ, ଦିଅ, ତାଙ୍କୁ ମତେ ଫେରେଇଦିଅ !

[ ବେହେଲାର କରୁଣ ସ୍ୱର କ୍ରମେ ମିଳାଇ
ଯନ୍ତ୍ର ସଙ୍ଗୀତରେ ପରିଣତ ହେଲା । ]

ବାଣ—ମୋର ପ୍ରତିଜ୍ଞାରେ ବାଧା ଦବା ତମର କ'ଣ ଉଚିତ ହେଉଛି ରାଣୀ ? ମତେ ତୁମେ ବାରମ୍ବାର ବିରକ୍ତ କରନାହିଁ । ମୁଁ ଉଷାର ଅମଙ୍ଗଳ ବାଞ୍ଛା କେବେହେଁ କରୁନାହିଁ ।

ମନୋରମା—ଉପଯୁକ୍ତ ବୟସରେ ତାର ବିବାହ ହୋଇ ନ ପାରିଲେ ତାର ଆଉ କି ମଙ୍ଗଳ ହେବ ?

ବାଣ—ମୋ ପ୍ରତିଜ୍ଞାରୁ ମୁଁ ତିଳେ ହେଲେ ଟଳିବି ନାହିଁ । ଯିଏ ମତେ ଯୁଦ୍ଧରେ ପରାଜିତ କରିବ, ତା'ର ହାତରେ ମୁଁ ମୋ କନ୍ୟା ଉଷାକୁ ସମର୍ପଣ କରିବି ।

ମନୋରମା—(ଗୀତ) ପ୍ରାଣେଶ୍ୱର, ଏ କେଉଁ ଅମଙ୍ଗଳ କଥା କର ।
ତ୍ରିଭୁବନେ ତବ ସମ ଅଛୁ କେହୁ କହ ହେ, ପ୍ରାଣନାଥ
ତେଜିମାର ସେ ହୋଇବଟି କାନ୍ତ ।୧।

ମନକୁ ନ ଆସେ ଯାହା ଶୁଣିନାହିଁ କର୍ଣ୍ଣ
ଅସମ୍ଭବ କଥା ସିନା କହୁଚ ଆପଣ ହେ, ଜୀବଧନ
ଜେମା ଜନ୍ମ ହେଲା ଅକାରଣ ।୨।

ଶୋଭାବେଳେ ଶଙ୍ଖ ସିନା ବଧିର ଭଆଣ
ଅବୁଝା ହେଉଚ ତୁମେ ନାଥ ଅକାରଣ ହେ, କନ୍ୟା ଧନ
ଗୃହେ ରଖି ବିପଦ କାରଣ ।୩।

ମନୋରମା—ମୋ ସାନ କଥା ମାନନ୍ତୁ ସ୍ୱାମୀ ! ଊଷା ପାଇଁ ଚଞ୍ଚଳ ବରପାତ୍ର ଠିକଣା କରନ୍ତୁ ।

ବାଣ—(ଗୀତ) ମତେ ବାର ବାର କର କହନାରେ
ବରବରନା
(ମୁଁ) ସାର କରିଛି ଯାହା ଶୁଣ କହିବ କ
ନାରଖାର ପରେ ହେବ ଲଳନା ।୦।

ମନୋରମା—ଆପଣ ମୋ ଉପରେ ବିରକ୍ତ ହେଉଛନ୍ତି ସିନା, କିନ୍ତୁ ଲୋକେ ଆପଣଙ୍କୁ କହିବେ—ଆପଣ ପିତା ନୁହନ୍ତି, କନ୍ୟାର ଶତ୍ରୁ ।

ବାଣ—(ଗୀତ) କାର ବଳେ ମତେ କହୁ ଝିଙ୍ଗାସି
କହ ମନେ କିବା ଅଛୁ ମନାସି
ଯା'ର ନାମ ଶୁଣି କମ୍ପୁଛି ମେଦିନୀ
ତା'ର ବୁଦ୍ଧିକୁ ତୁ କରୁ କଳନା ।୧।

ମନୋରମା—ଏକଥା କାହିଁକି କହୁଛନ୍ତି ସ୍ୱାମୀ ? ଆପଣଙ୍କ ଶକ୍ତି ପୁଣି ମତେ ଅଜଣା ଅଛି ?

ବାଣ—ତେବେ ମୋ ଇଚ୍ଛାରେ ବାଧା ଦେଉଚ କାହିଁକି ?

( ଗୀତ )

ସଂଗ୍ରାମରେ ଯେହୁ ଜିଣିବ ମତେ
କନ୍ୟା ସମର୍ପିବି ମୁଁ ତାର ହସ୍ତେ
ଏ ମୋ ଦୃଢ଼ପଣ ନ ହେବ ଖଣ୍ଡନ
ତୁ ଉଣ୍ଡାଭଣ୍ଡି ମତେ କରନା ।୨।

ବାଣ—ମୋର ଶେଷ କଥା ଶୁଣ ରାଣୀ—ଯିଏ ମତେ ପରାସ୍ତ କରିବ, ତା' ସହିତ ଉଷାର ବିବାହ ମୁଁ ଦେବି—ଏହି ମୋର ଦୃଢ଼ ବ୍ରତ । [ ଦ୍ୱନ୍ଦମୂଳକ ତୀବ୍ର ଯନ୍ତ୍ର ସଙ୍ଗୀତ ]

ଚିତ୍ର—ଜେମାମଣି, ତୁମେ ଏପରି କାହିଁକି ହେଉଚ ? କେହି ତ କୁଆଡ଼େ ନାହାନ୍ତି, ଏଠିକି ପୁଣି ଆସିବ୍ କିଏ ?

ଉଷା—ସଖି ଚିତ୍ରଲେଖା, ସରଳା—ସେ କୁଆଡ଼େ ଗଲେ ? କିଏ ତାଙ୍କୁ ମୋ ପାଖରୁ ଛଡ଼େଇନେଲ ?

ସରଳା—ଆମେ ଆଉ ପାରିବୁ ନାହିଁ ଜେମା—ରାଣୀମା' ଆସି ବୁଝନ୍ତୁ !

ଉଷା—ସେତେବେଳେ ଠିକ୍ ଅର୍ଦ୍ଧରାତ୍ର । ମୋ ନିଦ୍ରା ତୁଟିଯାନ୍ତେ ମୁଁ ଦେଖିଲି, ସେଇ ଦିବ୍ୟକାନ୍ତ ଜ୍ୟୋତିର୍ମୟ ପୁରୁଷ ମୋ ପଲଙ୍କରେ ଶୋଇଚନ୍ତି । ତାଙ୍କୁ ଦେଖି ମୋ ପଲକପାତ ହେଲା ନାହିଁ । ପ୍ରଭୁ ଇଷ୍ଟଦେବ, ମା' ଭଗବତୀ ସତେ ଯେପରି ମତେ ଚେତାଇ ଦେଲେ—ଏହି ତୋର ଇହକାଳର ଦେବତା, ପରକାଳର ତ୍ରାଣକର୍ତ୍ତା । ମନେ ମନେ ତାଙ୍କୁ ମୋ ହୃଦୟ ଅର୍ପଣ କରି ମୁଁ ପୁଣି ନିଦ୍ରାଗଲି···ନିଦ୍ରା ଭାଙ୍ଗିଗଲା ପରେ

ଦେଖୁଛି...କିଏ ଯେମିତି କେଉଁଠୁ ଆସି ମୋ' ହୃଦୟେଶ୍ୱରଙ୍କୁ ଅନ୍ତର କରିନେଇଛନ୍ତି ।

ଚିତ୍ରଲେଖା—ଛି ଜେମାଦେଈ, କାନ୍ଦ ନାହିଁ । ଇଏ ଖାଲି ସପନ କଥା । ସତରେ କ'ଣ ଏମିତି କୋଉଠି ଘଟେ ?

( ଗୀତ )

ଶାଇଲେ କି କେବେ ଫୁଟଇ କଇଁ
ଯାଚିଲେ କି ଅଗ୍ନି ସଂଯୋଗ ହୋଇ,
ଅବସନ୍ତେ କି ଗାବଇ କୋକିଳ
ସ୍ୱପ୍ନ କଥାରେ ଘଟଇ କି ଫଳ,
ଏ ତ ଅସମ୍ଭବ,
କେତକୀ ପୁଷ୍ପେ ଚୁମ୍ବଇ କି ଭୃଙ୍ଗ ।୦।

ସରଳା—ସତରେ ଜେମାଦେଈ, ଇଏ ତମ ମନର ଭ୍ରମ । ଏ କଥା ଗୁଡ଼ାକ ତମ ମନରୁ ପାଶୋରିଦିଅ ।

ଉଷା—କାହାକୁ ପାଶୋରିବି କହୁଚ ସଖି ? ମୋ ମନ ପ୍ରାଣରେ ଯିଏ ସ୍ନେହ ସୁଧା ଢାଳି ସିଞ୍ଚିଦେଇ ଗଲେ, ତାଙ୍କୁ ପାଶୋରି ପାରିବି ନାହିଁ । ବରଂ ମୁଁ ନିଜେ ତମମାନଙ୍କ ନିକଟରୁ ପାଶୋର ହୋଇଯିବି । ମୋ ହୃଦୟନାଥଙ୍କୁ ଯଦି ନ ପାଇଲି, ଆଉ ବଞ୍ଚି-ରହି ଲାଭ କ'ଣ ?

ଚିତ୍ର—ଇଏ କ'ଣ କହୁଚ ଜେମା ?

ଉଷା—ହଁ ସଖି ! ତମମାନଙ୍କ ସହିତ ଏଇ ମୋର ଶେଷ ଦେଖା । ଏ ଥର ମୁଦି ଚୁମ୍ବି... ଏଁ...ଏ କ'ଣ...ଏ ମୁଦି କାହାର !! ମୋ ମୁଦି ବଦଳରେ ଏ ମୁଦିଟି କିଏ ମୋ ଅଙ୍ଗୁଳିରେ ପିନ୍ଧାଇ ଦେଇଛି ?

ସରଳା—ଦେଖି ଦେଖି, ଜେମା ! ...ସତେ ତ, ଏ ମୁଦି ତମର ନୁହେଁ !

ଚିତ୍ର—ଏଇ ତ ପୁରୁଷ ହାତର ମୁଦି ।

ଉଷା—ମୋ କଥାକୁ ସ୍ୱପ୍ନ ବୋଲି ଉଡ଼େଇ ଦେଉଥିଲ ସଖି—ଏବେ
ଦେଖ ! ମୋ ହୃଦୟେଶ୍ୱର ତାଙ୍କ ସ୍ମୃତି ଚିହ୍ନ ମୋ' ନିକଟରେ
ଛାଡ଼ିଯାଇଛନ୍ତି ।

ଚିତ୍ର—ତେବେ ସେ ମୁଦିଟି ମତେ ଦିଅ ଜେମା—ମୁଁ ନିଶ୍ଚୟ ତୁମ
ଚିତ୍ତଚୋରକୁ ଖୋଜି ଖୋଜି ଆଣି ତମ ନିକଟରେ ପହଞ୍ଚାଇବି ।
ମା' ଦୁର୍ଗାଙ୍କ କୃପାରୁ ଏ ଚିତ୍ରଲେଖା କେବେ ବିଫଳ ହେବନାହିଁ ।

ଉଷା—ସତ କହୁଚୁ ଚିତ୍ରଲେଖା—ତାଙ୍କ ସହିତ ପାରିବୁ ତୁ ମତେ
ଭେଟାଇ ?

ଚିତ୍ର—ଦେଖିଲ ଜେମା, ମୋ ମନରୁ ଏଇ ଚିତ୍ରପଟ ସବୁ ମୁଁ
ଆଙ୍କୁଚି । ଚିହ୍ନିଲ, କୋଉ ଚିତ୍ରଟି ତାଙ୍କର ।

ଉଷା—ନା...ଇଏ ନୁହେଁ...ନା, ନା, ଏ ଚିତ୍ର ନୁହେଁ...ନାଇଁ ସଖି,
ଇଏବି ନୁହେଁ । (ଚମକି) ଚିତ୍ରଲେଖା ! ଠିକ୍ ଏଇ ଚିତ୍ର, ଏଇ
ରୂପ...ମୋ ଆଖି ଆଗରେ ନାଚି ଉଠୁଚି ସେ ରୂପ ଲାବଣ୍ୟ ।
...ମୁଁ ବୁଝି ପାରୁ ନାହିଁ ଚିତ୍ରଲେଖା—ତୁ ଦେବୀ ନା ମାନବୀ !
ତାଙ୍କୁ ନ ଦେଖି ତାଙ୍କ ଚିତ୍ର କେମିତି ଆଙ୍କିଲୁ ?

ଚିତ୍ର—ମୋର କିଛି ଶକ୍ତି ନାହିଁ ଜେମା—ସବୁ ମା' ଦୁର୍ଗାଙ୍କ ଇଚ୍ଛା ।
ଦିଅ ସେ ମୁଦି ।

ଉଷା—ନେ ସଖି ! ତୋ'ର ଭରସାରେ ମୁଁ ବଞ୍ଚି ରହିଲି ।

ଚିତ୍ର—କହିଚି ସଖି, ଦେବୀଙ୍କ କୃପାରୁ ଏ ଚିତ୍ରଲେଖାକୁ କିଛି ଅସାଧ୍ୟ
ହେବ ନାହିଁ ।

( ଗୀତ )

ସରଗର ସୁନାଚାନ୍ଦ ଗୋ ଚାନ୍ଦଚାନ୍ଦ ବଦନୀ
ଶରଧା ତୁ କଲେ ତୋଳି ଆଣି ଦେବି
ନ ବହି ତୁ ମନେ ଖେଦ ଗୋ...।୧।

ଏଇ ଘୁର କଥା ପାଇଁ ଗୋ
ନକର ତୁ ଚିନ୍ତା — ବାନ୍ଧ ଆଣି ଦେବ
ଥିବେ ତୋର କାନ୍ତ ଯହିଁ ଗୋ···।୨।
ଆଗ ପଛ ଭଲ ମନ୍ଦ ଗୋ
ଘଟିବଟି ଯାହା — ସମ୍ଭାଳିବୁ ତାହା
ନ ଜାଣୁଛି ଆମ୍ଭେ ଛନ୍ଦ ଗୋ···।

[ଉତ୍କଣ୍ଠାସୂଚକ ଯନ୍ତ୍ର ସଙ୍ଗୀତ]

ଅନିରୁଦ୍ଧ—ସଖା ଜୟନ୍ତ !
କେତେ ସ୍ଥାନ ଭ୍ରମି,
କେତେ ବନ ଉପବନ କରିଲି ଦର୍ଶନ,
କିନ୍ତୁ କେଉଁଠାରେ ନ ହୋଇଲା ଭେଟ
ପ୍ରିୟା ସଙ୍ଗେ ମୋର ।
କି କରିବି, କେଣେ ଯିବ ମୁହିଁ,
କିଏ ମତେ ଦେବ ସେହି ସ୍ୱର୍ଗର ପ୍ରତିମା ।

ଜୟନ୍ତ—ଶାନ୍ତ ହୁଅ ଭାଇ,
ମନ ସ୍ଥିର କର ।

ଅନିରୁଦ୍ଧ—ସ୍ଥିର ହୋଇ ନପାରେ ମୁଁ ସଖା !
ଯେଣେ ଚାହେଁ, ତେଣେ ଦିଶେ ସେ ଲାବଣ୍ୟ ରୂପ ।
ଚାଲ ସଖା ଯିବା ଦେଶାନ୍ତରେ,
ରାଜପୁରେ ନାହିଁ ପ୍ରୟୋଜନ ।

ଜୟନ୍ତ—ସଖା ଅନିରୁଦ୍ଧ ! ଏ କ'ଣ କହୁଚ ତୁମେ ? ସାମାନ୍ୟ ନାରୀ ପାଇଁ ପିତା ମାତା ଆତ୍ମୀୟସ୍ୱଜନଙ୍କୁ ପରିତ୍ୟାଗ କରିବ ?

ଅନିରୁଦ୍ଧ—ମୋର ସମସ୍ତ ଚିନ୍ତା, ସମସ୍ତ ବୁଦ୍ଧି ଯେ ଲୋପ ପାଇଲାଣି ସଖା !

( ଗୀତ )

କି ବୁଦ୍ଧି କରିବି ବନ୍ଧୁ, କେଣିକି ମୁଁ ଯିବି
କେମନ୍ତେ ସେ ସୁକୁମାରୀ ପ୍ରିୟାକୁ ଲଭିବି,
ମୋତେ କହ ସଖା
ତା'ର ବିନେ ନାହିଁ ମୋର ରକ୍ଷା···।୧।

କେତେ କମନୀୟ ରୂପ ସେ ଲାବଣ୍ୟନିଧି
ଗଢ଼ିଥିଲା କେତେ ଦିନ ବସି ତାକୁ ବିଧି
(ତାର) ରୂପ ଠାଣି
ନେଇଛି ମୋ ମନ ପ୍ରାଣ କିଣି···।୨।

ପ୍ରେମାନଳେ ମୋର ପ୍ରାଣ ଜାଳେ ସେ ଲଳନା
ତା'ର ସଙ୍ଗେ ମହୀରେ ମୁଁ ଦେବି କି ତୁଳନା,
ସେଇ ହେମଗୋରୀ,
ସ୍ୱର୍ଣ୍ଣଲତା ଗୃରୁ ବିମ୍ବାଧରୀ···।୩।

ଅନିରୁଦ୍ଧ—ପ୍ରିୟସଖା ଜୟନ୍ତ ! କୁହ ମତେ, କେମନ୍ତେ କି ଉପାୟରେ ମୁଁ ତାକୁ ପାଇପାରିବି ?

ଜୟନ୍ତ—ବିଧାତା ଯଦି ତୁମ ଲାଗି ତାକୁ ଗଢ଼ିଥିବ, ଦିନେ ନା ଦିନେ ସେ ତମ ପାଖକୁ ଫେରିଆସିବ ।

ଅନିରୁଦ୍ଧ—ଏଇ ତ ଦେଖିଲ ଜୟନ୍ତ—ଏ ରମଣୀଟି କିଏ ?

ପାଗଳମି ପରି ଆମରି ଉଦ୍ୟାନରେ ଏଣିକି ଆସୁଚ ।

ଚିତ୍ରରେଖା—(ଗୀତ)

ନାଥ ହୃଦୟ ବେଦନା କେବା ଜାଣିବରେ ?
ପୁରୁଷ ସୁଖର ସାଥି, ପୁରୁଷ ବିଶ୍ୱାସଘାତୀ
ପୁରୁଷେ କରି ପୀରତି, ସଦା ଝୁରି ମରିବାରେ । (୧)

ଅନିରୁଦ୍ଧ—କିଏ ତୁମେ ନାରୀ ?

ଚିତ୍ର—କିଏ ଆଉ—ଜଣେ ପାଗଳୀ ।

ଅନି—ଏ ଗୀତଟି କାହିଁକି ଗାଇଲ ?

ଚିତ୍ର—କେଉଁ ଗୀତ—ମୋର ତ ମନେନାହିଁ !

ଅନି—ଏଇ ମୁହୂର୍ତ୍ତିକ ମଧ୍ୟରେ ଭୁଲିଗଲ ?

ଚିତ୍ର—ପାଗଳୀ ଯିଏ ତାର କଣ କିଛି ମନେରହେ ?

ଅନି—ତୁମେ ପାଗଳୀ ନୁହଁ, ନିଶ୍ଚୟ ତୁମେ ଛଳନା କରୁଚ—ସଙ୍ଗୀତ ଛଳରେ ମତେ ଉପହାସ କରୁଚ ।

ଚିତ୍ର—ତେବେ ତୁମେ କ'ଣ କେଉଁ ଅବଳାର ଗଳାରେ ଛୁରୀ ଦେଇଚ ?

ଅନି—ନା ନା, ମୁଁ କାହାର ଗଳାରେ ଛୁରୀ ଦେଇନ, ମୁଁ ଜାଣି-ଶୁଣି କିଛି ଅନ୍ୟାୟ କରିନ । ମୁଁ ଠିକ୍ ବୁଝିପାରୁଚି ବିଦେଶିନୀ—ତୁମେ ମୋର ପ୍ରିୟାର ସମ୍ବାଦ ନେଇ ଆସିଚ । କୁହ ମୋର ପ୍ରିୟା କେଉଁଠି ?

ଚିତ୍ର—ମୁଁ କିଛି ଜାଣି ନାହିଁ ଲୋ ମା' ! ତେବେ ଏ ପତ୍ରଟି କିଏ ଜଣେ ମତେ ଦେଲା— ପଢ଼ି ଦେଖ—କଣ ଲେଖାହୋଇଛି !

ଅନି—(ପତ୍ରପାଠ) ସ୍ୱାମୀ ! ନିଶାର୍ଦ୍ଧେ ମୋ ନିର୍ଜନ ଶୟନ କକ୍ଷରେ ତୁମ ଶ୍ରୀମୁଖ ପଙ୍କଜ ଦର୍ଶନ କରି ଏ ଅଭାଗିନୀ, କୁଳ ମାନ ଲଜ୍ଜା ପରିତ୍ୟାଗ କରି ତୁମଠାରେ ନିଜକୁ ଅର୍ପଣ କରିଚି । ଯଦି ଏ

ପଦାଶ୍ରିତା ଦାସୀ ପ୍ରତି ଅନୁରାଗ ଥାଏ, ତେବେ କାଳ ବିଳମ୍ବ ନକରି ଦାସୀକୁ ଦେଖାଦିଅ । ଇତି ।

ନିବେଦନ—ଶ୍ରୀ ଶ୍ରୀ ରାଜାଧିରାଜ ବାଣାସୁରର ତନୟା ଉଷା ।

ଅନି—ଉଷା ! ମୁଁ ନିଶ୍ଚୟ ତେବେ ବିଶ୍ୱାସଘାତକତା କରିଛି ! ମତେ କ୍ଷମା ଦେ' ! ଆଉ ଅଭିମାନ କରନା ପ୍ରିୟେ !

( ଗୀତ )

ଆଉ କାନ୍ଦନାରେ ବଧୂ-ବଦନା । ପଦ ।
ବିଶ୍ୱାସରେ ବିଷ ଦେଇ ନାହିଁ ମୁଁ ନାରୀଣି
(ତୁ ମତେ) ଦୋଷ ଦେଇ ନିନ୍ଦନା ରେ ।୧।
ଛନ୍ଦ ତୋଠାରେ ମୋର ନାହିଁଟି ତିଳେ ମାତର
ବାନ୍ଧିବୀ ତୁ ମୋ କୁଳ ବନ୍ଦନା ।୨।
ମନ ଦଇବ କୃତ, ମୁଁ ନୁହେଁ ଦୋଷୀ ମାନ
(ତୁ) ନିର୍ଦ୍ଦୋଷୀ କୁ ଦଣ୍ଡନା ।୩।

ଜୟନ୍ତ—ସଖା ଅନିରୁଦ୍ଧ, ବାଣାସୁର ତୁମ ପିତାମହ ଶ୍ରୀକୃଷ୍ଣଙ୍କର ଘୋର ଶତ୍ରୁ । ତା'ର କନ୍ୟା ଉଷା ସହିତ···

ଅନି—ସେଥିପାଇଁ ମୋର ଭ୍ରୂକ୍ଷେପ ନାହିଁ । ମୋର ପ୍ରାଣପ୍ରିୟା ଉଷା ସହିତ ମିଳନ ନ ଘଟିଲେ, ମୋର ଏ ତପ୍ତ ହୃଦୟ ଶୀତଳ ହେବନାହିଁ । ଛଦ୍ମବେଶରେ ମୁଁ ତା' ଅନ୍ତଃପୁରକୁ ଯିବି । ଶୁଣ ବିଦେଶିନି ! ତୁମ ରାଜଜେମା ସହିତ ମୋତେ ଭେଟ କରାଇ ଦିଅ !

ଚିନ—ତୁଚ୍ଛାରେ ମୁଁ କିଛି କରେନା—କଣ ପୁରସ୍କାର ଦେବ କହ ।

ଅନି—ପୁରସ୍କାର ଦେବି ସୁନ୍ଦରି ! ମୋର ଏ ପ୍ରାଣ ପର୍ଯ୍ୟନ୍ତ ତୁମକୁ ଅର୍ପଣ କରିପାରେ ।

ଚନ୍ଦ୍ର—ପ୍ରାଣଟା ତ ମତେ ଦବ—ତାଙ୍କ ପାଇଁ ରଖିବ କଣ ?
ଅନି—କ୍ଷମାକର ମୋତେ, ମୋର ବୁଦ୍ଧି ଜ୍ଞାନ ସବୁ ଯେମିତି ହଜି ଯାଇଛି ।
ଚନ୍ଦ୍ର—ହଉ ! ଆସ ତେବେ···
ଅନି—ସଖା ଜୟନ୍ତ, ତୁମେ ଦ୍ୱାରକାକୁ ଫେରିଯାଅ ! କାହା ଆଗରେ ଏ କଥା ପ୍ରକାଶ କରିବନାହିଁ ! ଚାଲ ସୁନ୍ଦରୀ !

[ ଉତ୍କଣ୍ଠାସୂଚକ ଯନ୍ତ୍ର-ସଙ୍ଗୀତ ]

ଉଷା—ସରଳା ! ଚନ୍ଦ୍ରରେଖା କାହିଁ ଏ ପର୍ଯ୍ୟନ୍ତ ଫେରିଲେ ନାହିଁ ? ମତେ କଣ ଠକିଦେଇ ଗୁଲିଗଲା ?
ସରଳା—ଫେରିବ ଜେମା—ନିଶ୍ଚୟ ଫେରିବ । ତୁମେ ଏତେ ବ୍ୟସ୍ତ ହୁଅନା ।
ଉଷା—କେବେ ଆଉ ଫେରିବ ? କେତେ ଦିନ ଆଉ ଅପେକ୍ଷାରେ ରହିବ ?
ଉଷା—(ଗୀତ) କେତେ ନବଘନେ ଗୃହୀଁ ବସିଥିବ
କାହିଁକି ମୋ ବନ୍ଧୁ ନଇଲେ ଗୋ !
କେଉଁ ଦୋଷ ଦେଖି ଜୀବେଶ ମୋଠାରେ
ନିଷ୍ଠୁର ପଣକୁ ବହିଲେ ଗୋ
(ମୁଁ) କଣା ଦାସୀ ବୋଲି ଜଣାଇ ଦେଇଛି
ଭେଟିଲା ଯେବେ ତାଙ୍କୁ ପହିଲେ ଗୋ ।୧।
ଛନ୍ନ ଛନ୍ନ ସଦା ହୁଏ ଅପଘନ
ଦୁଃଖ ଅନଳେ ମତେ ଦହିଲେ ଗୋ
ରମଣୀ ଜୀବନ ବନ୍ଧ ଅକାରଣ
କାହିଁକି ଭଲ ବନ୍ଧ ଗଢ଼ିଲେ ଗୋ ।୨।

ଧରଳା—ଏଇ ଜେମା ! ଚିତ୍ରରେଖା ଆସିଲେଣି ।
ଊଷା—କ'ଣ ହେଲା ସଖି ! କିଛି କହୁନୁ ଯେ ?
ଚିତ୍ର—କହିବି କ'ଣ—ଚିତ୍ରରେଖା କେବେ ବିଫଳ ହୋଇ ଫେରିବ ନାହିଁ !
ଊଷା—ତେବେ କାହାନ୍ତି ମୋ ବନ୍ଧୁ ?
ଚିତ୍ର—ଅପୂ ଧର ସଖି ! ସେ ଛଦ୍ମବେଶରେ ଆସିଛନ୍ତି । ତୁମେ ଆସ ମୋ ସାଥିରେ ।
ଊଷା—ଚାଲ ସଖି !

[ଶିବ୍ର ଉତ୍କଣ୍ଠାସୂଚକ ଯନ୍ତ୍ର ସଙ୍ଗୀତ]

ଅନି—ଊଷା ! ଆଜ ହରଗୌରୀ ପ୍ରସାଦରୁ ମନର ବିଷାଦ ଓ ହୃଦୟର ଦୁଃଖ ଦୂର ହୋଇଯାଇଛି ସତ; କିନ୍ତୁ ପ୍ରିୟେ, କିଏ ଜାଣେ କାହାର ଏ ଲୀଳା ? କିଏ ବା ଜାଣେ କାହାର ଏ ଆଶ୍ଚର୍ଯ୍ୟ ଖେଳା ? କିଏ ଆମ୍ଭ ଦୁହିଁଙ୍କୁ ନିଶାର୍ଦ୍ଧରେ ଗୋପନରେ ମିଳନ କରାଇ ପୁଣି ବିଚ୍ଛେଦ ଘଟାଇଥିଲା—ପୁଣି କାହାଦ୍ୱାରା ଆଜ ଏ ଶୁଭ-ମିଳନ ଘଟିଲା ? ଏ ରହସ୍ୟ ମୁଁ କିଛି ବୁଝି ପାରୁନାହିଁ ! ଏ ସମସ୍ତ ମୋତେ ମାୟାପରି ଜଣାଯାଉଛି ।

ଊଷା—ସ୍ୱାମି ! କ୍ଷୀଣବୁଦ୍ଧି ଅବଳା ମୁଁ—ମୋର କି ଶକ୍ତି ଅଛି ମୁଁ ଏ ରହସ୍ୟ ବୁଝିବି ? ତୁମକୁ ମୁଁ ପାଇଛି—ଏହା ମୋର ମହାଭାଗ୍ୟ । ମୁଁ ଏତିକି ଜାଣେ, ମହାମାୟାଙ୍କ ଅନୁଗ୍ରହ ନ ହୋଇଥିଲେ, ଆମର ଏ ପୁନର୍ମିଳନ ଘଟିନଥାନ୍ତା ।

ଚିତ୍ର—ଜେମା, ଜେମା···
ଊଷା—କଣ ଲୋ ଚିତ୍ରରେଖା ?

ଚର—ବଡ଼ ବିପଦ । କାହାଠାରୁ ସନ୍ଧାନ ପାଇ ମହାରାଜା କ୍ରୋଧରେ
ଗର୍ଜନ କରି ଏଣିକି ଆସୁଛନ୍ତି ।
ବାଣା—(ଦୂରରୁ) ଶୁଣିଲ ଯା ସତ୍ୟ ଯେବେ ହୋଇଥାଏ ତାହା,
ତେବେ ବଧିବି, ବଧିବି ମୋର କଳଙ୍କିନୀ ଦୁହିତା ଉଷାକୁ ।
ଉଷା—କଣ କରିବି ସଖି ! ପିତା ମୋର ବଡ଼ ନିର୍ଦ୍ଦୟ, ବଡ଼ ନିଷ୍ଠୁର ।
ମୋର ପ୍ରାଣ ପାଇଁ ଚିନ୍ତାନାହିଁ ; କିନ୍ତୁ ମୋ ହୃଦୟେଶ୍ୱରଙ୍କୁ
କପରି ରକ୍ଷାକର ।
ଅନି—ଧୈର୍ଯ୍ୟଧର ପ୍ରିୟେ—କିଛି ଚିନ୍ତା କରନାହିଁ ।
(କିଛି କ୍ଷଣ ନୀରବତା)

ବାଣା—ପ୍ରହରୀ ! ଦେଖ ବେଗେ, କାହିଁ ସେଇ କୁଳକଳଙ୍କିନୀ—
କାହିଁ ସେଇ ଦୁର୍ମତି ତସ୍କର ?
ପ୍ରହରୀ—ଏଇ—ଏଇ ଦେଖନ୍ତୁ ଦୈତ୍ୟରାଜ—ଏଇଠି ସେ ତସ୍କର ।
ବାଣା—ଲୌହ ଶୃଙ୍ଖଳରେ ଶୀଘ୍ର ଏ ଦୁରାତ୍ମାର ହସ୍ତପଦ ବନ୍ଧନ
କର !
ଅନି—ଦାନବରାଜ ! ଯଦୁବଂଶୀ ରାଜକୁମାର ସାମାନ୍ୟ ପ୍ରହରୀଦ୍ୱାରା
ବନ୍ଦୀ ହେଇପାରେନା ।
ବାଣା—ଏଁ...ତୁ ଯଦୁବଂଶୀ ? ମୋର ଚିରଶତ୍ରୁ, ଗୋପାଳବେଶୀ
ରାମକୃଷ୍ଣଙ୍କ ବଂଶଜ ତୁ ?
ଅନି—ହିଁ—ମୁଁ ଭଗବାନ କୃଷ୍ଣଙ୍କର ପୌତ୍ର ଅନିରୁଦ୍ଧ ।
ବାଣା—ରେ ହୀନମତି କୁମାର ! କେଉଁ ସାହସରେ ତୁ ତ୍ରିଭୁବନ
ବିଜୟୀ ବାଣାସୁରର ଅନ୍ତଃପୁରରେ ପ୍ରବେଶକଲୁ ? ଜାଣୁ

ତୋର ଏଇ ଦୁଷ୍କର୍ମ ପାଇଁ ତୋତେ କ ଦଣ୍ଡ ଭୋଗିବାକୁ ପଡ଼ିବ ?

(ଗୀତ)

ଆରେରେ ମେଣ୍ଢା ବଢ଼ିମା ପଣ ତୋ
ଭାଙ୍ଗି ଦେବ ନଷ୍ଟେ ଆଜରେ ।
ତୁ କେଉଁ ସାହସେ ପଶି ମୋର ବାସେ
ଚରିଳ ଗୃହିଲୁ ପାଜରେ । ୦ ।
ବାଣାର ପ୍ରତାପ ନାହିଁ କରେ ଜଣା
ଦନକଣା ପରି ହେଲୁ ବାଠ ବଣା
ମରଣ ଦଶା ତୋ ଘୋଟିଲାଣି ଆଜ
ସବୁ ତେଜ ଯିବ ଭାଜରେ । ୧ ।

ବାଣା—ପ୍ରହରୀ !
ପ୍ରହରୀ—ଆଦେଶ ଦୈତ୍ୟରାଜ !
ବାଣା—ଜେମା ଓ ତା'ର ସହଚରୀମାନଙ୍କୁ ବନ୍ଧକର ! ମୁଁ ଏ ମୂର୍ଖଟାକୁ ନିଜ ହସ୍ତରେ ଶାସ୍ତିଦେବ ।
ପ୍ରହରୀ—ଯଥା ଆଜ୍ଞା ମହିମା !
ଅନି—ସାବଧାନ ପ୍ରହରୀ ! ଜେମା ଅଙ୍ଗ ସ୍ପର୍ଶ କରନା !
ବାଣା—ମୂର୍ଖ ! ତୋର ଏତେ ଆସ୍ପର୍ଦ୍ଧା, ତୁ ପୁଣି ମୋ ପ୍ରହରୀକୁ ଆଦେଶ କରିବୁ !
ଅନି—ମୋ ଆସ୍ପର୍ଦ୍ଧାର ସାକ୍ଷୀ ମୋ ହାତର ଏଇ ତରବାରି । ଶକ୍ତି ଅଛି ତ ମୋ ସହିତ ଯୁଦ୍ଧରେ ଅବତୀର୍ଣ୍ଣ ହୁଅ !
ବାଣା—ତୁ ମୋ ସହିତ ଯୁଦ୍ଧ କରିବୁ ? ବାଣାସୁର ସହିତ···(ହସ) ବେଶ୍···ମୁଁ ପ୍ରସ୍ତୁତ ।

[ ସମରବାଦ୍ୟ ]

ଅନି—(ହସି) ଦୈତ୍ୟରାଜ ! କାହିଁଗଲା ତୁମର ତ୍ରିଭୁବନ ବିଜୟୀ ଶକ୍ତି ? ମୋର ହସ୍ତେ ପରାଜିତ ତୁମେ ।

ବାଣା—ଆଃ...ଆଃ...

ଅନି—ପ୍ରିୟତମା ! ପିତା ତମର ଆହତ...ତାଙ୍କର ଶୁଶ୍ରୂଷା କର ।

ଉଷା—ପିତା !

ବାଣା—ଆଃ...କଏ ?

ଉଷା—ମୁଁ ଆପଣଙ୍କ ଦୁଃଖିନୀ କନ୍ୟା...ଉଷା ।

ବାଣା—ଉଷା ! ତୁ ଉଷା ! ପାପିନୀ, କାହିଁକି ମୋ ଅଙ୍ଗ ସ୍ପର୍ଶକଲୁ ? ଦୂର୍ ହୁଅ କଳଙ୍କିନୀ ! ପ୍ରହରୀ, ନେଇଯା ଏଇଟାକୁ । ଆଉ କାହିଁଗଲା ସେ ମୂର୍ଖ ଅନିରୁଦ୍ଧ ?

ଅନି—ସମ୍ମୁଖରେ ତବ ଦଣ୍ଡାୟମାନ ବାଣାବିଜେତା ଅନିରୁଦ୍ଧ ।

ବାଣା—କଣ କହିଲୁ ? ବାଣା ବିଜେତା ! ହାଃ ହାଃ ହାଃ—ଶଶକ ଜିଣିବ ରଣେ କେଶରୀକୁ ପୁଣି ? ମୂଷିକ ଟଳାଇ ପାରେ ହିମାଳୟ ଗିରି ?

ଅନି—ଶୁଣ ଦୈତ୍ୟବର ! ମୃତ୍ୟୁ ତବ ଆଜ ହସ୍ତେ ମୋର । ପରାଜିତ ହୋଇ ଯେବେ ହେଲନାହିଁ ଜ୍ଞାନ—ଏବେ ଆଉ ନାହିଁ ପରିତ୍ରାଣ ।

ବାଣା—ମୂର୍ଖ— ପୁନର୍ବାର ରଣେ ଏବେ ହୁଅ ଅବତୀର୍ଣ୍ଣ ।

ଅନି—ପ୍ରସ୍ତୁତ ମୁଁ ।

[ ସମରବାଦ୍ୟ ]

ବାଣା—(ଅଟ୍ଟହାସ୍ୟ) ହାଃ ହାଃ ହାଃ...ପାମର ! କାହିଁ ଏବେ ତୋର ସେ ପୂର୍ବ ତେଜ, ପୂର୍ବ ବଳ ?

ଅନ—ମୁଁ ସ୍ୱୀକାର କରୁଛି ଦୈତ୍ୟରାଜ—ତୁମ ସହ ଦ୍ୱିଯୁଦ୍ଧ ବାର ଯୁଦ୍ଧରେ ମୁଁ ପରାଜିତ; କିନ୍ତୁ ମନେରଖ ଏହାର ଫଳ ଅଚିରେ ତୁମେ ଭୋଗକରିବ ।

ବାଣା—ପ୍ରହରୀ—ଏ ବାଗୁଳକଣ୍ଠାର ହସ୍ତପଦ ବାନ୍ଧି ତାକୁ ନେଇ କାରାଗାରରେ ନିକ୍ଷେପ କର !

ପ୍ରହରୀ—ଚୂଲ ମୂର୍ଖ ! ନାଗପାଶ ବନ୍ଧନରେ ବାନ୍ଧି ତୋତେ ଅନ୍ଧକାର କାରାଗୃହର ଅତଳ ଗର୍ଭରେ ନିକ୍ଷେପ କରିବି ।

ଉଷା—ନାଁ ନାଁ ପ୍ରହରୀ—ତାଙ୍କୁ ବାନ୍ଧନାହିଁ—ବାନ୍ଧନାହିଁ !

ବାଣା—ତୁନିହ କଳଙ୍କିନି ! ପ୍ରହରୀ...

ପ୍ରହରୀ – ବାନ୍ଧୁଛି ସମ୍ରାଟ – ନାଗପାଶ ବନ୍ଧନରେ ବାନ୍ଧୁଛି ।

ବାଣା – ବେଶ୍, ଏଥରକ ଏ ପାପିନୀ ଉଷାକୁ ନେଇ କାରାଗାରରେ ନିକ୍ଷେପ କର !

ପ୍ରହରୀ – ପ୍ରଭୁ, ଉଷା ଜେମାମଣି ଯେ ଆପଣଙ୍କ କନ୍ୟା ।

ବାଣା – ଚୁପ୍‌କର ! ଯାହା ଆଜ୍ଞା ଦେଲି ଶୀଘ୍ର ପାଳନ କର !

ମନୋରମା – ଏ କଣ କ' ରନ୍ତି ସ୍ୱାମି ! ଇଏ ଯେ ମୋର ପ୍ରାଣର ଦୁହିତା ଉଷା – ମୋର ଅଳିଅଳୀ କନ୍ୟା !

ବାଣା – କନ୍ୟା ନୁହେଁ ପ୍ରିୟେ – କାଳ ଭୁଜଙ୍ଗିନୀ ।

ମନୋରମା—ଆପଣଙ୍କ ମନକଥା ବୁଝୁଛି ସ୍ୱାମି ! ଏଥରକ ତାକୁ କ୍ଷମା ଦିଅନ୍ତୁ !

ମନୋରମା – (ଗୀତ) ନାଥ ହେ ଦିଅ କ୍ଷମା ଏଥର,

ଦୁହିତା ମୋହର ଅତି ସୁକୁମାରୀ
ତା ପ୍ରତି ନ ହୁଅ ଏତେ ନିଷ୍ଠୁର । (ପଦ)
ଦୁଃଖିନୀର ଧନ ଅନ୍ଧୁଣୀ ନୟନ
ସେ ମୋ ଉଷାକୁ କ୍ଷମ ହେ ପ୍ରାଣେଶ୍ୱର !

ଦେଖି ତା’ କଣ ଧରିବ କ ପ୍ରାଣ
ଭକ୍ଷିବଟି ନଷ୍ଟେ ଆଜ ଜହର ।୧।

ବାଣ—ନାଁ ପ୍ରିୟେ ! ସିଏ ଆଉ ଆମ ଆଦରଣୀ କନ୍ୟା ନୁହେଁ—ସିଏ ପାପିନୀ—କଳଙ୍କିନୀ—କାଳ ଭୁଜଙ୍ଗିନୀ ।

ମନୋରମା—(ଗୀତ) ଆହେ ଦୈତ୍ୟରାଣ ଧରୁଚି ଚରଣ
ମୋ ମିନତି ଘେନନ୍ତୁ ଏହୁବାର,
ଦଣ୍ଡିବାର ଶକ୍ତି ଥାଏ ଯାର ତାର
କ୍ଷମା ଦେବାଟି ଉଚିତ ବେଭାର ।୨।

ମନୋରମା—ନାଥ ! ଏ ଅଧୀନାର ମିନତି ଘେନାକରନ୍ତୁ ।

ବାଣ—କିଛି ଶୁଣିବନାହିଁ । ସେ ପାପିନୀ ମୋର ସର୍ବନାଶ କରିଚି । ପ୍ରହରୀ !

ପ୍ରହରୀ—ଆଜ୍ଞା ଶିରୋଧାର୍ଯ୍ୟ ମହାରାଜ !

ମନୋରମା—ନାଥ ! ଉଷା ସହିତ ତାହେଲେ ମତେ ମଧ କାରାଗାରରେ ନିକ୍ଷେପ କରନ୍ତୁ ।

ବାଣ—ଆପତ୍ତି ନାହିଁ । ତା’ପରି କନ୍ୟାର ମାତା ମଧ ତାରି ପରି ଦଣ୍ଡ ପାଇବା ଉଚିତ । ପ୍ରହରୀ !

ପ୍ରହରୀ—କ୍ଷମା ମହାରାଜ ! ଦାନବକୁଳ ଲକ୍ଷ୍ମୀ ଆମ ମହାରାଣୀଙ୍କୁ କାରାଗାରକୁ ନେବାପାଇଁ ମୋର ହସ୍ତପଦ ଚଳୁନାହିଁ ।

ବାଣ—ଯାହା କହୁଚି ମୋର ଆଜ୍ଞା ପାଳନ କର ! ଆଉ ଶୁଣ ମୋର ଆଦେଶ—ଏ ମୂର୍ଖ ଅନିରୁଦ୍ଧକୁ କାଲି ପ୍ରଭାତରେ ଶ୍ମଶାନ ଚଣ୍ଡୀଙ୍କ ନିକଟରେ ନେଇ ପହଞ୍ଚାଇବୁ । କାଲି ତାକୁ ସ୍ୱହସ୍ତରେ ବଳି ଦେଇ ମା’ ଚଣ୍ଡୀଙ୍କର ତୃଷା ନିବାରଣ କରାଇବ—ଯା !

ପ୍ରହରୀ—ଯଥା ଆଜ୍ଞା ମହାରାଜ !

[ ଦୁଃଖ ମିଶ୍ରିତ ସଂଶୟସୂଚକ ଯନ୍ତ୍ର ସଙ୍ଗୀତ ]

ପ୍ରହରୀ—ଏ ସ୍ଥାନର ନାମ ଦକ୍ଷିଣ ଶ୍ମଶାନ । ଶ୍ମଶାନ ଚଣ୍ଡୀ ହେଉଛନ୍ତି ଅଧିଷ୍ଠାତ୍ରୀ ଦେବୀ ।

ଅନି—ଏଇଠି ମତେ ବଳି ଦିଆଯିବ ?

ପ୍ରହରୀ—ହଁ, ମହାରାଜ ସ୍ନାନସାରି ଆସି ନିଜ ହସ୍ତରେ ବଳିଦେବେ । ଏଇତ ମହାରାଜ ଆସିଲେଣି !

ବାଣା—ଯୂପ କାଠ ପ୍ରସ୍ତୁତ ପ୍ରହରୀ !

ପ୍ରହରୀ – ପ୍ରସ୍ତୁତ ମହାରାଜ !

ବାଣା – ତୋର ଆଜ ଅନ୍ତ ସୌଭାଗ୍ୟର ଦିନ ଅନିରୁଦ୍ଧ ! ତୋ ଶୋଣିତରେ ଆଜ ମା ଶ୍ମଶାନ ଚଣ୍ଡୀ କାଳିକାଙ୍କ ତୃଷା ନିବାରଣ ହେବ ।

ଅନି—ଯଥାର୍ଥ କହିଛନ୍ତି ଦାନବ ରାଜ ! ମାତା ମହିଷମର୍ଦ୍ଦିନୀ ଯେତେବେଳେ ତାର ପୁତ୍ରର ରକ୍ତପାନ କରିବେ, ଇଏ ନିଶ୍ଚୟ ଅତି ଭାଗ୍ୟର କଥା !

ବାଣା —ଶେଷ ମୁହୂର୍ତ୍ତରେ ତେବେ ତୋର ଜ୍ଞାନ ଉଦୟ ହେଇଛି ?

ଅନି—ଏଇ ତା'ହେଲେ ମୋର ଶେଷ ମୁହୂର୍ତ୍ତ ।

( ଗୀତ )

ସରିଲା ସରିଲା ମୋର ଭବରଙ୍ଗ ଖେଳା
ସନ୍ନିକଟ ହେଲା ଆସି ଅନ୍ତରର ବେଳା
ମୋର ଲୀଳା ଖେଳା
ସରିଗଲା ବୁଡ଼ିଗଲା ଭେଳା । ୧ ।

ନଦେଖିଲି ତାତ ମାତ ବନ୍ଧୁ ସହୋଦର
ଗୋପନେ ଶ୍ମଶାନେ ପ୍ରାଣ ହାରିଲି ନିକର
ଏ ଦୁର୍ଲ୍ଲଭ ଜନ୍ମ,
ହେଲା କିବା ଆଜ ଅକାରଣ । ୨ ।

ବାଣା—ଏବେ ପ୍ରସ୍ତୁତ ହୁଅ ମୂର୍ଖ !

ଅନି—ମୁଁ ପ୍ରସ୍ତୁତ ଦୈତ୍ୟରାଜ; କିନ୍ତୁ ବଳି ଦବା ପୂର୍ବରୁ ମୋର ଗୋଟିଏ ଅନୁରୋଧ ଆପଣ ରକ୍ଷାକରିବେ ?

ବାଣା—ମୋ ନିକଟରେ ତୋର ପୁଣି କି ଅନୁରୋଧ ? ଯଦି ଉଚିତ ମନେକରେ ରକ୍ଷାକରିବି । କି ଅନୁରୋଧ ପ୍ରକାଶ କର !

ଅନିରୁଦ୍ଧ—( ଗୀତ )
ଆହେ ଦୈତ୍ୟରାଜ ଘେନ ମୋ ଅରଜ
ଗରଜ ପଡ଼ିଛି ମୋର,
ବରଜବଧାରୀ ଶ୍ରୀପଦ ପଙ୍କଜ
ମୋ ହୃଦେ ଅଙ୍କନ କର !
ଏହି ଲଲାଟ ପଟେ
ପିତାମାତା ପଦ ଲେଖ ତଟେ । ୧ ।
ହର ପାର୍ବତୀଙ୍କ ପବିତ୍ର ନାମକୁ ସର୍ବାଙ୍ଗରେ ଲେଖିଦଅ
ହରିଯିବ ମୋର ମନର ସଧଟି ନଥିବ ଶମନ ଭୟ
ଥରେ ବଧ ସୁଦୟା,
ମାଗୁଣି ମାନିକ ମୋର ଏହା । ୨ ।

ଅନି—ଦାନବରାଜ ! ବଳି ଦବା ପୂର୍ବରୁ ମୋର ହୃଦୟରେ ଶ୍ରୀକୃଷ୍ଣଙ୍କ ପଦାରବିନ୍ଦ—ଲଲାଟରେ ପିତାମାତାଙ୍କ ପାଦଯୁଗଳ—ସର୍ବାଙ୍ଗରେ ହର ପାର୍ବତୀଙ୍କ ନାମ ଲେଖିଦଅନ୍ତୁ !

ବାଣା—ପୂଜକ, ଶୀଘ୍ର ଅନିରୁଦ୍ଧର ଇଚ୍ଛା ପୂରଣ କର !

[ ତାଳ ବାଦ୍ୟ ]

ବାଣା—ଏଥର ମା' ଭବାନୀଙ୍କ ନାମ ସ୍ମରଣ କରି ବଳିକାଠରେ
ମସ୍ତକ ରଖ ।

ଅନି—ମା ଦୁର୍ଗେ ! ଏ ଅନିରୁଦ୍ଧ ତୋର ପାଦପଦ୍ମ ସ୍ମରଣ କରି ଏ
ସଂସାରରୁ ବିଦାୟ ନେଉଛି । ଦୈତ୍ୟରାଜ ମୁଁ ପ୍ରସ୍ତୁତ ।

ବାଣା—ମାତା ରଣଚଣ୍ଡୀକେ ! ମୋର ଅରାତି ଏହି ଦୁର୍ମତିକୁ ତୋର
ନିକଟରେ ବଳିଦେଲି । ବଳି ଗ୍ରହଣ କରି ମୋ ପ୍ରତି ସୁ-ପ୍ରସନ୍ନା
ହୁଅ ମା ! ପୂଜକ ଖଡ୍ଗ ଦିଅ !

[ ଏକାନ୍ତ ଖିତପ୍ରଦ ଯନ୍ତ୍ରସଙ୍ଗୀତର ତୀବ୍ର ଝଙ୍କାର ]

ପାର୍ବତୀ—କ୍ଷାନ୍ତହୁଅ ବାଣାସୁର !
କାହାକୁ ତୁ ଦେଉ ବଳିଦାନ ?
ତ୍ରୈଲୋକ୍ୟ ଆରାଧ୍ୟ ହରି ପତିତପାବନ
ତା'ଙ୍କ ପୌତ୍ର ଅନିରୁଦ୍ଧ ନାହିଁ କି ସ୍ମରଣ ?

ବାଣା—ଆଶ୍ଚର୍ଯ୍ୟ ହେଉଛି ମାଗୋ ଶୁଣି ତବ କଥା !
ଦ୍ୱାରକା ନିବାସୀ କୃଷ୍ଣ ଗୋପୀମନଚୋର
ନନ୍ଦପୁରେ ଲୁଚିଥିଲି ଯେହୁ କଂସ ଡରେ
ସେ କି ଅଟେ ହରି ନାରାୟଣ ?
ଭ୍ରମାଚ୍ଛନ୍ନ ତୁମେ ମାତା !

ପାର୍ବତୀ—ରେ ଅବୋଧ !
ଭ୍ରମାଚ୍ଛନ୍ନ ନୁହେଁ ମାତା ତୋର,
ନିଜେ ଭୁଲି ପଡ଼ିଅଛୁ ଭ୍ରମେ ।

ତେଣୁ ଏବେ ମନର ବିକାରେ
ମୁକ୍ତ କର ଅନିରୁଦ୍ଧେ ଏଇ ମୁହୂର୍ତ୍ତରେ ।
ବାଣା—ଶୁଣ ମାତ !
ବାକ୍ୟ ତବ ପାଳିବି ମୁଁ ସତ୍ୟ !
କିନ୍ତୁ ଶୁଣିଛି ମୁଁ ମାତ !
କପଟୀ ଲମ୍ପଟୀ ସେଇ କୃଷ୍ଣ
ଦାନଛଳେ ପିତାଙ୍କୁ ମୋ ଦେଇଛି ଦୁର୍ଦ୍ଦଶା ।
କୃଷ୍ଣ ମୋର ଶତ୍ରୁ
ତାର ସଙ୍ଗେ ଯୁଝିବା ମୋ ଅବଶ୍ୟ କର୍ତ୍ତବ୍ୟ ।
ପାର୍ବତୀ—କହୁଛନ୍ତି ଶିବ ତୋତେ,
ପୂର୍ଣ୍ଣହେବ ତୋର ମନସ୍କାମ ।
ସମ୍ମୁଖ ସମରେ ଭେଟିବୁ ତୁ କୃଷ୍ଣେ,
ଏଇ ସାବଧାନ—ନ ଶୁଣିବ ବାଣ ଭୁଜା ମୁହିଁ ।
ଏବେ କାରାଗାରେ ରୁଦ୍ଧକର ଅନିରୁଦ୍ଧେ ନେଇ ।
ବାକ୍ୟ ମୋର କଲେ ଅନ୍ୟଥା
ପରିଣାମେ ମନ୍ଦଫଳ ଘଟିବ ଅବଶ୍ୟ । (ପ୍ରସ୍ଥାନ)
ବାଣା—ତବ ଆଜ୍ଞା ଶିରୋଧାର୍ଯ୍ୟ ମାଆ ।
ହେ ପ୍ରହରୀ,
ମୁକ୍ତକର ଅନିରୁଦ୍ଧେ ନିଅ କାରାଗାରେ ।

( ଦୃଶ୍ୟସୂଚକ ଯନ୍ତ୍ର ସଙ୍ଗୀତ )

ନାରଦ — ନାରାୟଣ — ନାରାୟଣ !
କୃଷ୍ଣ — ଆସନ୍ତୁ ଦେବର୍ଷେ ! ଆପଣଙ୍କର ମଙ୍ଗଳ ତ ?

ନାରଦ—ପ୍ରଭୁ ଗୋଲୋକ-ବିହାରୀଙ୍କ କୃପାରୁ ଅମଙ୍ଗଳ ଏ ଜୀବନରେ ଘଟିନି ।

କୃଷ୍ଣ—ମୁଁ ମନେ ମନେ ଆପଣଙ୍କୁ ସ୍ମରଣ କରୁଥିଲି ।

ନାରଦ—ମୋର ସୌଭାଗ୍ୟ ।

କୃଷ୍ଣ—ମୋର ନାତି ଅନିରୁଦ୍ଧର ସମ୍ବାଦ କହନ୍ତୁ । କିଛିଦିନ ହେଲା ସେ ଦ୍ୱାରକାରୁ ଅନ୍ତର୍ଦ୍ଧାନ ହୋଇଯାଇଛି ।

ନାରଦ—ଅନିରୁଦ୍ଧ ! (ହସିଲେ)

କୃଷ୍ଣ—ହସିଲେ ଯେ ?

ନାରଦ—ଅନିରୁଦ୍ଧ ପ୍ରେମ କରୁଥିଲା, ଧରାପଡ଼ିଛି ।

କୃଷ୍ଣ—ପ୍ରେମ ! ଅନିରୁଦ୍ଧ ପ୍ରେମକରୁଥିଲା ?

ନାରଦ—ବ୍ୟସ୍ତ ହୁଅନ୍ତୁ ନାହିଁ ଦ୍ୱାରକାପତି । ଆଉ କିଛି ପ୍ରେମ ନୁହେଁ—ବାଣାସୁରର କନ୍ୟା ଉଷା ସହିତ ଅନିରୁଦ୍ଧ ଗୋପନ ପ୍ରଣୟ ସ୍ଥାପନ କରିଥିଲା । ଦୈବବଶତଃ ବାଣାସୁର ଏ କଥା ଜାଣିପାରି ତାକୁ ନେଇ ଶ୍ମଶାନରେ ବଳିଦେଉଥିଲା; କିନ୍ତୁ ମା' ଭବାନୀ କୌଶଳକ୍ରମେ ଅନିରୁଦ୍ଧକୁ ସାତଦିନ ପାଇଁ ଉଦ୍ଧାର କରିଛନ୍ତି ।

କୃଷ୍ଣ—ଅନିରୁଦ୍ଧ ମୋର କାହିଁ ?

ନାରଦ—ଶୋଣିତ ନଗରରେ ବାଣାସୁର ବନ୍ଦିଶାଳାରେ ।

କୃଷ୍ଣ—ମୂଢ଼ମତି ବାଣାସୁରର ଏ ଆସ୍ପର୍ଦ୍ଧା ! ମମ ପୌତ୍ର ଅନିରୁଦ୍ଧେ କରିଛି ସେ ବନ୍ଦୀ ? କିଏ ଅଛ ? ସେନାପତିଙ୍କୁ ସମ୍ବାଦ ଦିଅ—ଆଜି ଏହି ମୁହୂର୍ତ୍ତରେ ବାଣାସୁର ବିପକ୍ଷରେ ହେବ ଯୁଦ୍ଧ ଅଭିଯାନ ।

( ଗୀତ )

ସାଜରେ ଯାଦବ ବୀରେ ସାଜ ରଣ ସାଜ
ଦର୍ପିଷ୍ଟ ବାଣାର ଗର୍ବ—ଖର୍ବ କର ଆଜ । (ପଦ)
ଧର ଧନୁର୍ବାଣ ଅସି—ଆତ୍ମୀୟ ସ୍ୱଜନେ ମିଶି
ଦୈତ୍ୟକୁଳେ ଖରେ ନାଶି ଉଡ଼ା ଜୟଧ୍ୱଜ । ୧ ।
ସମ୍ମୁଖ ସଂଗ୍ରାମେ ଦୁଷ୍ଟ—ହେବଟି ନଷ୍ଟେ ବିନଷ୍ଟ
ଚଳ ଖରେ ରଜ ଥାଟ ପୂର୍ଣ୍ଣକର କାର୍ଯ୍ୟ । ୧ ।

କୃଷ୍ଣ—ଆସ ସର୍ବେ ଯଦୁ ବୀରଗଣ
ଆସ ସର୍ବେ ଦ୍ୱାରକା ନିବାସୀ,
ଏ ମୁହୂର୍ତ୍ତେ ବାଣାପୁରେ ଯିବା ଖରତରେ
ଆଜ ନିଷ୍ଚେ ଯୁଦ୍ଧହବ ବାଣା ସହିତରେ,
ଚଳ ସେନା—ସେନାପତି ମେଦିନୀ କମ୍ପାଇ ।

ମିଳାତକଣ୍ଠ—(ଗୀତ) ଜାଗ ଜାଗ ହେ, ଲାଗ ଲାଗ ହେ !
ଯାଦବ ଗୌରବ ଲାଗି ପ୍ରାଣକର ତ୍ୟାଗ ହେ । ୦ ।
ଧର ଧର ଧର, ଧନୁ ବର୍ଚ୍ଛା ବାଣ
ଧର ଧର ଖରେ ଶାଣିତ କୃପାଣ
ତେଜ ସର୍ବ ଭୟ ଆଜ ପ୍ରାଣ ପଣେ ଲାଗ ହେ । ୧ ।

କୃଷ୍ଣ—ଦୂତବର !
ଦୂତ—ଆଦେଶ ଦ୍ୱାରକାପତି ।
କୃଷ୍ଣ—ବାଣାସୁରେ କହ ଯାଇ
ପ୍ରାଣେ ଆଶା ଯେବେ ଥାଏ ତାର
ଅନିରୁଦ୍ଧେ ଘେନ ଆସୁ ଶୀଘ୍ର ଆମ୍ଭ ପାଶ ।
ତା ନୋହିଲେ
ମୁଣ୍ଡହୀନ ଗଣ୍ଡି ତାର ଲୋଟିବ ଏ ମହୀ ।

ଦୂତ—ଯଥା ଆଜ୍ଞା !

[ ଦନ୍ତ-ସଙ୍ଗୀତ ]

ପ୍ରହରୀ—ଦୈତ୍ୟରାଜ ।

ବାଣା—କି ସମ୍ବାଦ ପ୍ରହରୀ ?

ପ୍ରହରୀ—ଦ୍ୱାରକାର ଦୂତ ତୁମ୍ଭଙ୍କ ଦର୍ଶନ ଅଭିଳାଷୀ ।

ବାଣା—ଦ୍ୱାରକାର ଦୂତ ! ଆସିବାକୁ ଆଜ୍ଞା ଦିଅ !

ପ୍ରହରୀ—ଯେ ଆଜ୍ଞା !

ବାଣା—ଦ୍ୱାରକାଧିପତି କୃଷ୍ଣ ମୋ ପାଖକୁ ଦୂତ ପେଷିଛି ? କାହିଁକି ?

ଦୂତ—ଦୈତ୍ୟରାଜଙ୍କର ଜୟହେଉ !

ବାଣା—ଆଗମନର ଉଦ୍ଦେଶ୍ୟ ଜଣାଅ ଦୂତ !

ଦୂତ—ଦାନବ ରାଜ ! ଅନିରୁଦ୍ଧ କାହାର ବଂଶଧର ଜାଣନ୍ତି ତ ? ତାଙ୍କୁ ଶୀଘ୍ର ମୁକ୍ତ ଦିଅନ୍ତୁ ।

ବାଣା—ମୁକ୍ତ ନ ଦେଲେ ?

ଦୂତ—ଅନର୍ଥ ଘଟିବ ।

ବାଣା—ମୁଁ ତ ଚାହେଁ ଅନର୍ଥ ଘଟୁ !

ଦୂତ—ରାମ କୃଷ୍ଣ ଦୁଇଭାଇ ଯଦୁ ସେନାସହ ଆପଣଙ୍କ ରାଜ୍ୟ ସୀମାରେ ଉପସ୍ଥିତ । ଶକ୍ତି ଅଛି ତ ତାଙ୍କ ସହ ଯୁଦ୍ଧ କରନ୍ତୁ । ନଚେତ୍ ଅନିରୁଦ୍ଧଙ୍କୁ ମୁକ୍ତକରି ତାଙ୍କ ନିକଟରେ କ୍ଷମା ଭିକ୍ଷା କରନ୍ତୁ ।

ବାଣା—କ୍ଷମା ଭିକ୍ଷା ? ଏତେ ବଡ଼ ଆସ୍ପର୍ଦ୍ଧା ? ମୁଁ ମାଗିବି କ୍ଷମା··· ସାମାନ୍ୟ ଗୋପାଳ ନିକଟେ ?

ଦୂତ—ତେବେ ଯୁଦ୍ଧ ଅନିବାର୍ଯ୍ୟ ।

ବାଣା—ହଁ, ଯାଅ ! ଜଣାଅ ସେ କୃଷ୍ଣେ
ଅବିଳମ୍ବେ ଯୁଦ୍ଧ ସାଜେ ସାଜ
ଭେଟିବି ମୁଁ ତାକୁ ।
ଆଜ ଯୁଦ୍ଧେ ହେବ ଆମ ଶକ୍ତିର ପରୀକ୍ଷା ।

[ ସମର ବାଦ୍ୟ ]

ବାଣା—ଏ କଣ ହେଲ ? ଦେଖୁ ଦେଖୁ ମୋ ପକ୍ଷର ସମସ୍ତ ଯୋଦ୍ଧା ନହତ ହେଲେ । ତେବେ କୃଷ୍ଣ କଣ ପ୍ରକୃତରେ ମୋର ସମସ୍କନ୍ଧ ଯୋଦ୍ଧା ? ଏଇ ତ ଆସୁଛ !

କୃଷ୍ଣ—ଦର୍ପୀ ବାଣା ! ଆଜ୍ଞ ତୋର ନସ୍ତାର ନାହିଁ । ସ୍ୱୟଂ ସଦାଶିବ ଯଦି ତୋ ସପକ୍ଷରେ ଅସ୍ତ୍ର ଧରନ୍ତି, ତେବେ ମଧ୍ୟ ତୋର ରକ୍ଷାନାହିଁ ।

ବାଣା—କାହାର ରକ୍ଷାନାହିଁ, ବର୍ତ୍ତମାନ ତାର ନଷ୍ପତ୍ତି ହୋଇଯିବ ।

ବାଣା—(ଗୀତ) ଆରେ ଆରେ ହୀନ ଗୋପାଳ ନନ୍ଦନ
କପାଳ ତୋ ଫାଟିଲାଣି ଆଜ
କାଟିବି ତୋ ଶିର ଲମ୍ପଟ ବର୍ବର
କଲୁଣି ତୁ ବଡ଼ ମନ୍ଦ କାର୍ଯ୍ୟ ।
ଗୋପାଳୁଣୀ ମାଡ଼- ଖିଆ ତୁ ଧିଙ୍ଗୁଆ
ମୁଖେ ନାହିଁ ତୋର ଟିକେ ଲଜ
ମୋହ କରୁ ବଡ଼ି ଯିବୁ କ ଶ୍ରୀପତ
ଦେଖିବି ତୋଠାରେ କେତେ ତେଜ । ୧ ।

ବାଣା—ପାଷଣ୍ଡ ! ଯଦୁକୁଳ କୁଳାଙ୍ଗାର···ପ୍ରସ୍ତୁତ ହୁଅ ।

କୃଷ୍ଣ—ପ୍ରସ୍ତୁତ ମୁଁ ।

[ ସମର ବାଦ୍ୟ ]

କୃଷ୍ଣ—ହାଃ,...ହାଃ...ହାଃ...! ମୂର୍ଖ ବାଣାସୁର, ଏବେ ତୋର ଇଷ୍ଟ ସ୍ମରଣକର !

ପାର୍ବତୀ—ରକ୍ଷାକର ଗୋବିନ୍ଦ ! ମୋର ବରପୁତ୍ର ବାଣାସୁରକୁ ରକ୍ଷାକର !

କୃଷ୍ଣ—ନା ଭବାନୀ ! ମୋତେ ବାଧା ଦିଅନାହିଁ । ମୁଁ ନିଶ୍ଚୟ ବାଣାକୁ ବଧ କରିବ ।

ପାର୍ବତୀ—ବାଣା, ଯୁଦ୍ଧରେ ତୁ ହାରିଯାଇଛୁ । ଏବେ କୃଷ୍ଣଙ୍କଠାରେ କ୍ଷମା ମାଗି ଜୀବନ ରକ୍ଷାକର !

ବାଣା—ଏ ଜୀବନ ଯିବ ପଛେ ମୁଁ ତା'ଠାରେ କ୍ଷମା ମାଗି ପାରିବ ନାହିଁ ।

କୃଷ୍ଣ—ଶୁଣିଲେ ତ ଦେବୀ ପାର୍ବତୀ—ମୁଁ ଏବେ ଚକ୍ର ସ୍ମରଣ କରୁଛି ।

ପାର୍ବତୀ—ମୋର ମିନତି ରକ୍ଷା କରିବ ନାହିଁ ଜନାର୍ଦ୍ଦନ !

କୃଷ୍ଣ—ତେବେ ଶୁଣ ଦେବି ! ତୁମର ଅନୁରୋଧ ରକ୍ଷାକରି ମୁଁ ତାକୁ ପ୍ରାଣରେ ବଧ କରି ନପାରେ; କିନ୍ତୁ ତାର ସହସ୍ର ବାହୁ ଛେଦନ କରି ତା ଗର୍ବ ଖର୍ବ କରିବ ।

ପାର୍ବତୀ—ଦୟାସାଗର ଶ୍ରୀହରି, ସହସ୍ର ବାହୁ ମଧ୍ୟରୁ ବାଣାର ମାତ୍ର ଚାରିଗୋଟି ବାହୁ ରକ୍ଷାକର । ସେ ମୋର ପୁତ୍ର ପରି ।

କୃଷ୍ଣ—ବେଶ୍ ! ତମରି କଥା ହେଉ ।

( ସମୁଚିତ ଯନ୍ତ୍ର ସଙ୍ଗୀତ )

ବାଣା—ଆଃ, ଏତେ ଦିନକେ ମୁଁ ଶକ୍ତିହୀନ ହେଲି । ମୋ ଅହଙ୍କାରର
ସମୁଚିତ ଦଣ୍ଡ ଲଭିକଲି । ମଧୁସୂଦନ, ମତେ କ୍ଷମାକର !

କୃଷ୍ଣ—ଉଠ ବୀର ବାଣାସୁର, ଉଠ !

ବାଣା—ମା ଦୁର୍ଗେ—ମୋର ପ୍ରାର୍ଥନା, ମୋର କନ୍ୟା ଉଷାକୁ ମୁଁ
ତାର ଯୋଗ୍ୟ ପାତ୍ର ଅନିରୁଦ୍ଧ ହାତରେ ଅର୍ପଣ କରିବି ।

ପାର୍ବତୀ—ଦ୍ୱାରକାଧିପତି ତୋ ପ୍ରାର୍ଥନା ନିଶ୍ଚୟ ପୂର୍ଣ୍ଣକରିବେ ।

କୃଷ୍ଣ—ଏ ପ୍ରସ୍ତାବରେ ମୁଁ ଅତି ଆନନ୍ଦିତ ହେବି ! ଚାଲନ୍ତୁ ଆପଣଙ୍କ
ସମ୍ମୁଖରେ ଏ ମିଳନ-ଉତ୍ସବ ଅନୁଷ୍ଠିତ ହେବ ।

[ ମିଳନାତ୍ମକ ଯନ୍ତ୍ରସଙ୍ଗୀତ ]

———